# ବାମଣ୍ଡା-ରାଜ-ପ୍ରଶସ୍ତି

---

ଶ୍ରୀମଧୁସୂଦନ ରାଓ

# ବାମଣ୍ଡା-ରାଜ-ପ୍ରଶସ୍ତି ।

ରାୟ ଶ୍ରୀମଧୁସୂଦନ ରାଓ ବାହାଦୁର
ପ୍ରଣୀତ ।

ଶ୍ରୀଦୀନବନ୍ଧୁ ଗଡ଼ନାୟକ ପ୍ରେସ ସେକ୍ରେଟରୀଙ୍କ ଦ୍ୱାରା
ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ ମୁଦ୍ରିତ ।
ବାମଣ୍ଡା ।
୧୯୧୧

## ବାମଣ୍ଡାରାଜ

## ମହାତ୍ମା ଶ୍ରୀ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ

## ତ୍ରିଭୁବନଦେବ ମହୋଦୟଙ୍କ ପ୍ରତି ।

---

ଜୟ ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ
ଦେବ ଦେବ-ମନା
ଧନ୍ୟ ହେ ସ୍ୱଜନ ତବ ସ୍ୱଜୋଚିତ
ଜୀବନ - ସାଧନା ।
ଜୟ ଯୋଗ୍ୟ ବଂଶଧର ପୁଣ୍ୟଶ୍ଳୋକ
ଶ୍ରୀ ଗଙ୍ଗ ବଂଶର
ଗଙ୍ଗାସୂନୁ ଶାନ୍ତନବ - ସମ ଶାନ୍ତ
ସଂଯମ - ସଙ୍ଗର ।
ସଂପଦର ଭୋଗତବ ଜ୍ଞାନ — କର୍ମ-
ଯୋଗର ସଂଗମେ
ସୁସଂଗତ ସୁସଂହତ ସୁମଙ୍ଗଳ
ଆଚାର - ନିୟମେ ।
ମହାଯଶା କର୍ମବୀର ତାତ ତବ
ମନୀଷି - ସତ୍ତମ

ନୃପବର ବାସୁଦେବଙ୍କ ଶ୍ରୀସୁଡ଼ଲ
　　　　　ଦେବ ଦେବୋପମ ।
ହବ୍ୟନେନେ ଦେବଲୋକୁଁ ଦେଖୁଛନ୍ତୁ
　　　　　ଅନାହତ ଚଳେ
ଜ୍ଞାନପୂତ କର୍ମପଥେ ଗତିଭବ
　　　　　ନୃପତି - ଚରିତେ ।
ଚତୁର୍ବର୍ଗ ଫଳପ୍ରଦ ଗାର୍ହ୍ୟାଶ୍ରମ
　　　　　ସର୍ବାଶ୍ରମ-ସାର
ସେ ଆଶ୍ରମ ତପୋବନ ଧର୍ମକ୍ଷେତ୍ର
　　　　　ମହା ତପସ୍ୟାର ।
ଐଶୀଶକ୍ତି - ପ୍ରଭବେ ଫଳିତ
　　　　　ଅଭାବ - ପୂରଣ
ହେ ସତନ ରାଜଧର୍ମ ଏହି ମହା --
　　　　　ବ୍ରତ - ଆଚରଣ
ଦୀକ୍ଷିତ ଏ ସୁବୃହତ୍ତର ସୁବିସ୍ତର
　　　　　ମହାପୁଣ୍ୟ ବ୍ରତେ
ଜ୍ଞାନ-ବିଜ୍ଞାନର ଶକ୍ତି - ପ୍ରୟୋଗରେ
　　　　　ରତ ଅନାରତେ ।

ପ୍ରଜାକୁଳ ଆଧିବ୍ୟାଧି ଦୁଃଖଗ୍ଳାନି-
ହରଣେ ପ୍ରୟାସୀ
ପତିତଙ୍କ ପିତାମାତା ଜ୍ଞାନଦାତା
ଧର୍ମ - ଅନ୍ତେବାସୀ।

ଉନ୍ନତ ଲଲାଟେ ରାଜ - ଗୌରବରେ
ଟେକ ରାଜଶିର
ଆତ୍ମ ମର୍ଯ୍ୟାଦାର ଟେକ ରଖିଅଛ
ହେ ନିର୍ଭୀକ ବୀର।

ପୁଣି ନତ ବିନମ୍ରରେ ଫଳଭରେ
ନତ ତରୁ ସମ
ବିନମ୍ର ସୁଜନ ସୌମ୍ୟ ଶକ୍ତିଶୋଭା
ଏକାଧାରେ ଧର।

ଶ୍ରୀକରେ ଶାସନ - ଦଣ୍ଡ ନ୍ୟାୟ-କ୍ଷମା-
କ୍ଷେମେ ସୁଗଠିତ
ହୃତ୍-କନ୍ଦରୁ କରୁଣାର ସୁଧାଧାର
ଝରେ ଅକୁଣ୍ଠିତ।

ଧନ୍ୟ ଧନ୍ୟ ନୃପମଣି ରାମଚନ୍ଦ୍ର
ସୁଭଗ ସୁବ୍ରତ

ବାମଣ୍ଡାର ସୁପ୍ରତିଷ୍ଠା – ବରଧନ
କଲ୍ୟାଣ–ନିରତ।
ଏ ରାଜ୍ୟର ସୁଶାସନ – ସୁପାଳନ –
ରୀତି – ଦରଶନେ
ରାମରାଜ୍ୟ ଦେଖିଲକି ତ୍ରିଭୁବନ
ଉତ୍ଫୁଲ୍ଲଇ ମନେ।
ପଲ୍ଲବ-କୁସୁମଙ୍କେ କାନନଶ୍ରୀ
ଯଥା ସୁସଜ୍ଜିତା
ରାଜର୍ଷି ରାଜ୍ୟଶ୍ରୀ ତବ ଧନଧାନ୍ୟେ
ତେସନ ଶୋଭିତା।
ହେ ପ୍ରଜାବତ୍ସଲ ତବ ବାତ୍ସଲ୍ୟର
କଲ୍ୟାଣ – ପରଶେ
ଫୁଟି ଆସୁଅଛି ପ୍ରଜା – ହୃଦ – ପଦ୍ମ
ବିକାଶ-ହରଷେ।
ଅମାୟିକ ସ୍ନେହଭକ୍ତି-ସୁଧାଧାରା
ରାଜ-ପରିବାରେ।
ପ୍ରବାହିତ ପରସ୍ପରେ କରପ୍ରିୟ
ପ୍ରେମ-ଅଧିକାରେ।

ସମାପୃଣେ ପ୍ରକାଶିତ ସୌଭ୍ରାତ୍ରକୁ
ଯେଉଁ ପୁଣ୍ୟଛବି
ଦେଖିବାର ପ୍ରତିଚ୍ଛବି ମୁଗ୍ଧମୁର୍ତ୍ତି
ଅଟେ ରାଜ-କବି ।
କବି ଗୁଣୀ ଶ୍ରୀଶ୍ରୀଦେବ ବଳଭଦ୍ର
ପ୍ରମୁଖ ଅନୁଜେ
ସଖା ଓ ସଚିବ ରୂପେ ପ୍ରେମେବନ୍ଧି
ତବ ସ୍ନେହଭୁଜେ ।
ଶୁଦ୍ଧ ଅନୁରାଗ ବିନା ଜଗତର
ସମ୍ପଦ-ସମ୍ଭାର
ଧନବଳ ବାହୁବଳ ଅଟଇ ହେ
ନିତାନ୍ତ ଅସାର ।
ବିଧାତାର ଆଶୀର୍ବାଦେ ଶୁଦ୍ଧପ୍ରୀତି
ସକଳ କ୍ଷେମଦ!
ମଧୁରୁଁ ମଧୁରତର କରୁ ତବ
ଜୀବନ ସର୍ବଦା ।

ସ୍ୱାର୍ଥର ଅନର୍ଥ ହେତୁ ହେ ସମର୍ଥ
ପରମାର୍ଥ-ରଥେ

ମତ୍ତ ଚଳାଇଛନ୍ତି ଶୁଦ୍ଧ ସୌନ୍ଦର୍ଯ୍ୟର
ସୌରଭ–ଉଭସେ ।
ପରମାତ୍ମା ଧ୍ରୁବସତ୍ୟ ସେହିଏକା
ପରମ ସୁନ୍ଦର,
ଏ ବିଶ୍ୱପ୍ରକୃତି ଘୋଷେ ରସୋ ବୈ ସଃ
ଅମର ମନ୍ତ୍ରର ।
ଏ ମନ୍ତ୍ରର ମହାଗାନ ଅନୁଦାତ୍ତ
ଉଦାତ୍ତ ସ୍ୱରିତ
ଛନ୍ଦେ ଛନ୍ଦେ ମହାନନ୍ଦେ ବେଦ–ମନ୍ତ୍ର–
ନାଦେ ଝଙ୍କାରିତ ।
ସେ ଗମ୍ଭୀର ସେ ପ୍ରଶାନ୍ତ ସଂଗୀତର
ସୁଧାରସ – ପାନେ
ନନ୍ଦିତ ପସ୍ୱଣତିବ ଗାଉଅଛନ୍ତି
ସୁଗମ୍ଭୀର ତାନେ,
“ବୈଦିକ ପ୍ରକୃତି” ଗାଥା ବିରଚିତ
ଦିବ୍ୟ ଅବଧାନେ
ଋଷିକବି ମାନସର ମହାଦ୍ଭୁତ—
ଭେଦୀ ପ୍ରଣିଧାନେ ।

ବ୍ୟୋମସ୍ପର୍ଶୀ ସେ ଧ୍ୟାନର ମହାତୁଙ୍ଗ
ଶିଖରୁ ଓହ୍ଲାଇ
ନମ୍ରେ ଏସଂସାର - କ୍ଷେତ୍ରେ ପ୍ରେମପୂତ
ନୟନ ବୁଲାଇ
ଦେଖିଅଛନ୍ତି ଋଷିନେତ୍ରେ ଚତୋଭିଦ-
ଜୀବ ଜଗତରେ
ରସମୟୀ ବିଶ୍ୱଲକ୍ଷ୍ମୀ କରୁଛନ୍ତି
ଲୀଳା ଚରାଚରେ ।
ପ୍ରୀତିର ଅମରାବତୀ ନରନାରୀ-
ଯୁଗଳ - ଅନ୍ତରେ,
କାବ୍ୟର ନନ୍ଦନବନେ କବିବୃନ୍ଦ-
କଳ୍ପ - ନିକୁଞ୍ଜରେ
ଅଙ୍କିତ ଯେ ମିଳନର ବିରହର
ଛବି ଅନୁପମ ,
ସଂଗୀତ ଯେ ପ୍ରେମଗାଥା ନାନାସ୍ୱରେ
ଶ୍ରାବ୍ୟ ମନୋରମ ,
ସେହିପ୍ରୀତି ଅବତାର ମର୍ତ୍ତ୍ୟବାସୀ
ନର ନାରୀ - ପ୍ରାଣେ

ବୈକୁଣ୍ଠ କରଇ, ମର୍ତ୍ତ୍ୟ ଆଦର୍ଶରେ
ଅମୋଘ ସନ୍ଧାନେ ।
ସେହି ପ୍ରୀତ, ଭକ୍ତିନ୍ଦ୍ରୀ, ମହାଶ୍ୱେତା -
ପୁଣ୍ଡରୀକ - ପ୍ରାଣେ
ଦେଖାଉଛ ସ୍ୱର୍ଗକର ଅଭିନବ
କାଦମ୍ବରୀ - ଗାନେ
ତଥିପରେ ବରଷିତ ହେଉ ସ୍ୱର୍ଗ-
କୁସୁମ- ଚନ୍ଦନ
ସର୍ବଥା ସାର୍ଥକ ହେଉ ତବ କବି-
ପ୍ରାଣର ସାଧନ ।
ଅତୀତ ଯୁଗର କାବ୍ୟରସ ପାନ
ତନ୍ମୟ ମାନସରେ,
ଯୁଗଯୁଗାନ୍ତ-ର ସେହି ପ୍ରେମଗାଥା
ଗୁଣି ପ୍ରେମାଦରେ,
ସେ ଆଲେଖ୍ୟ, ସେ ସଙ୍ଗୀତେ ଅର୍ପି ନବ
ଅର୍ଥର ଗୌରବ,
ରଚୁଛ ତନ୍ମୟମନେ କବିତାର
ମାଳା ଅଭିନବ ।

ଅଦ୍ୟଯୁଗେ ଅପ୍ସରସ ପ୍ରସବିତା
ଯେଉଁ ପୁଷ୍ପଶର
ଫୁଟୁଥିଲା ନରନାରୀ-ବକ୍ଷ ଭେଦି
ପ୍ରେମର ଝର୍ଝର,
( ପାଷାଣୁ ଫୁଟିଲେ ଯଥା ସାୟକରେ
ଉଷ୍ଣ ଉଦକର
ଭୀଷ୍ମ ତୃଷ୍ଣା-ତୃପ୍ତି-ଅର୍ଥେ କୁରୁକ୍ଷେତ୍ରେ
ପାର୍ଥ ବୀରବର । )
ସେ ଶର ଲେଖଇ ନବ୍ୟ କବିରଙ୍କର
ହୃଦୟ-ରୁଧିରେ,
ଅବା ମିଳନର ମୁଗ୍ଧ ମଧୁମୟ
ସ୍ୱର୍ଗୀପଙ୍କ-ନୀରେ,
ଯେଉଁ ମହା ପ୍ରେମଗାଥା, କଳୁଷିତ
ବୀଭତ୍ସ ବିକାରେ
ନୁହେ ତାହା, କିନ୍ତୁ ତାହା ମର୍ମେ ମର୍ମେ
ସ୍ୱର୍ଗର ଆସାରେ ।
ବିଷ୍ଣୁ-ପଦୋଦ୍ଭବା ପ୍ରୀତି ବିଷ୍ଣୁପଦୀ
ବୈକୁଣ୍ଠ ପ୍ଲାବନୀ

ଜୀବର ପରମ ସଙ୍ଗେ ପରପ୍ରୀତି
ପ୍ରାଣ-ପ୍ରହ୍ଲାଦନୀ
ବିକଶିତ ହେବ ବୋଲି ଜୀବାତ୍ମାର
ହୃଦ-ଶତଦଳେ ।
ନରନାରୀ ସନ୍ଧଣରେ ପ୍ରୀତିଲୀଳା
ବ୍ୟକ୍ତ ଭବ-ତଳେ ।
ସେହି ପ୍ରାଣ-ପ୍ରଣୟର ପୁଣ୍ୟରସ
ସୌନ୍ଦର୍ଯ୍ୟ-ସାଗରେ
ଭସାଏ ଭସାଏ ଯେହ୍ନେ ହଂସାଳୀର
ଶୁଷ୍କ ଦଗ୍ଧାନ୍ତରେ,
କବି ସେହି, ଋଷି-ସେହି, ଆନନ୍ଦବ-
ବିଧାତାର ବରେ
ବାଲ୍ମୀକି ପରାଏ ନରେ ବସାଏ ସେ
ଦେବ-ଆସନରେ ।

ବିଜ୍ଞାନର ମହାଯୁଗ ସମାଗତ
ଏ ଧରଣୀ-ତଳେ
ଜୟବୈଜୟନ୍ତୀ ତାର ଉଡୁଅଛି
ଏ ମହୀମଣ୍ଡଳେ ।

ବିଜ୍ଞାନହିଁ ମହାଶକ୍ତି, ବିଜ୍ଞାନହିଁ
ଅମୋଘ କୁଞ୍ଚିକା
ଫେଡିବାକୁ ବ୍ରହ୍ମାଣ୍ଡର ଗୂଢ଼ତମ
ରହସ୍ୟ-ପେଟିକା ।
ବିଜ୍ଞାନ ଦୁର୍ବଳ କ୍ଷୁଦ୍ର ମାନବର
ଶିରେ ଲଲାଟରେ
ସମ୍ରାଟ-ମୁକୁଟ ଦିଏ ପିନ୍ଧାଇଣ
ମହା ସମାଦରେ ।
ବିଶ୍ୱର ବିଶ୍ୱର-ପ୍ରାଜ୍ଞ ବିଜ୍ଞାନର
ଆଶ୍ଚର୍ଯ୍ୟ ସାଧନ,
ସ୍ୱାତନ୍ତ୍ର୍ୟ-ଗ୍ଳନାରେ ଗୁରୁ-ଗର୍ବ
ତାର ପ୍ରୟୋଜନ ।
ଲଗାଉଛନ୍ତି ସେ ବିଜ୍ଞାନେ ସ୍ୱାଜ୍ୟହିତେ
ସ୍ୱାଜ୍ୟ-କର୍ଣ୍ଣଧାର,
ବିଜ୍ଞାନ ଟାଣୁଛି ତେଣୁ ଦାସୀରୂପେ
ବାଣିଜ୍ୟ-ସଂସାର ।
ତେଣୁ ନବ ଶିଳ୍ପ-ଶାଳା ଆବିଷ୍କରଣ
ନବ କୃଷିକ୍ଷେତ୍ର,

ଯେତେ କଲିଯୁଗ-କଳ କଲଇ ହେ
ଦର୍ଶକର ନେତ୍ର ।
ତେଣୁ ମହାଦେବୀ-କୁଲ୍ୟା ନବନଦୀ
ବହିବ ଅଚିରେ
ଶସ୍ୟ-ଶ୍ୟାମା ଏ ଧରଣୀ ବହୁଗୁଣେ
ଶୋଭିବ ରୁଚିରେ ।
ପ୍ରଜାଶିକ୍ଷା ଜ୍ଞାନ-କର୍ମ-ଯୋଗେ ହେଉ
ନିତ୍ୟ ଅଗ୍ରସର
ବିଭୁପଦେ ଏ ପ୍ରାର୍ଥନା ଶୁଭାକାଂକ୍ଷୀ
ଏ ଦୀନ ଜନର ।
କିନ୍ତୁ ଅହେ ସୂକ୍ଷ୍ମଦର୍ଶୀ ବିଜ୍ଞବନ୍ଧୁ
ସୁଧୀର ଚିନ୍ତନେ
ବିଜ୍ଞାନ ଅପରା ବିଦ୍ୟା ମୋହ-ପାଶେ
ବାନ୍ଧଇ ସେ ଜନେ ।
ପରା ବିଦ୍ୟା-ସୁଶାସନେ ନୋହିଲେ ସେ
ସୁପରିଚାଳିତ
ଅସଙ୍ଗତି-କଳଙ୍କ ରାଶି ନର ପ୍ରାଣୁ
ନୋହିବ କ୍ଷାଳିତ ।

ପ୍ରାଚୀନ ଭାରତେ ତେଣୁ ଋତର୍ଷଭ
ମହାତ୍ମା ସରବେ
ଜନକାଦି ରାଜ-ଋଷି ପ୍ରଜ୍ଞାନର
ଅମୋଘ ଗୌରବେ
ଅନୁଭବ ସୁଗଭୀର ସୁପ୍ରଶାନ୍ତ
ପ୍ରଣିଧାନ-ବଳେ
ଚରମ ପରମ ଶ୍ରେୟ ଦେଖିଥିଲେ
ବ୍ରହ୍ମ-ପଦତଳେ ।
ପ୍ରଜ୍ଞାନହିଁ ବ୍ରହ୍ମଜ୍ଞାନ ପରା ବିଦ୍ୟା
ପରମ ପ୍ରମାଣ
ଶ୍ରଦ୍ଧାଭରେ ସେ ପ୍ରମାଣେ ପରିମାଣି
ବିଜ୍ଞାନର ମାନ
ବିଜ୍ଞାନ-ବଳରେ ଦେଖି ବିଶ୍ୱ ମଧ୍ୟେ
ବିଶ୍ୱଜନ୍ମୀ ଚିତ୍ ‡
ପ୍ରଜ୍ଞାନ-ପ୍ରଭାବେ ଜୀବ ଜିଣି ମୃତ୍ୟୁ
ଭୁଞ୍ଜଇ ଅମୃତ ।
ସେ ଅମୃତ,କରୁଣାର ଅନ୍ତହୀନ
ନିର୍ଝରୁ ଝରଇ

‡ ସନାତନ ନିୟମ ।

ଅମୃତ ପିପାସୁ କୁନ୍ତ-ସନ୍ତାନର
ପିପାସା ହରଇ ।
ଯେସନେ ହେ ଧେନୁ ସ୍ତନୁ କ୍ଷୀରାମୃତ
ହୋଇଣ କ୍ଷରିତ
କ୍ଷୁଧାତୁର ବତ୍ସ-କ୍ଷୁଧା ସ୍ନେହାବେଗେ
କରେ ନିବୃତ୍ତ ।

ତାହାପରି ସାହିତ୍ୟ ଯୋଗେ ଅଭ୍ୟୁଦୟ
ଘଟଇ ଜାତିର,
ତେଣୁ ସାରସ୍ୱତସାରେ ଗଢିବାକୁ
ବାଙ୍ମୟ-ମନ୍ଦିର,
ପିତୃଦେବ-ପଦଚିହ୍ନ ଅନୁସରି
ପରମ ଯତନେ
ଉତ୍କଳ ସାହିତ୍ୟ-ହିତ ସାଧୁଅଛ
ଅକୁଣ୍ଠିତ ମନେ ।
ସାହିତ୍ୟ-ଉନ୍ନତି-ଅର୍ଥେ ଶ୍ରଦ୍ଧାପୂତ
ତବ ଆୟୋଜନ
ସାର୍ଥକ ସଫଳ ହେଉ, ଲଭୁ ଦେଶ
ନୂତନ ଜୀବନ ।

ଝଞ୍ଜ ବର୍ଷପରେ ଅଙ୍କ ଏ ନୟନ
ଦେଖିଲି ଆବର
କେ ଦନ୍ତା ପର୍ବତପ୍ରସ୍ଥେ ତପୋମୂର୍ତ୍ତି
ପ୍ରଧାନପାଠର ।
କି ଭୂମା ତପସ୍ୟାବ୍ରତେ କି ଅଧୀନ
ଅମୃ -ଦର୍ଶନେ
ସେ ମହା ପ୍ରପାତ ରତ କଳ୍ପବ୍ୟାପୀ
ସଂକଳ୍ପ – ସାଧନେ
ସମ୍ଭୂତ ଅନନ୍ତ ତପୋ ରାଶି ପ୍ରାପ୍ତେ
ତାର ବାଉଶି
ଢାଳି ଦେଉଅଛି ପ୍ରେମେ ଧରା ତଳେ
ସେ ମହା ସନ୍ନ୍ୟାସୀ ।
ଊର୍ଦ୍ଧ୍ୱକୁ ଅନାଇ ସଦା କି ଅଭୟ
ଆଶା–ଆଶ୍ୱାସର
କି ଗମ୍ଭୀର ବେଦ-ମନ୍ତ୍ର ଝଙ୍କାରରେ
ଭରଇ ଅମ୍ବର
ଏ ପରମୋଦାର ଦୃଶ୍ୟ ଏତ ମହା
ତପସ୍ୱୀ – ମୂରତି

ଦେଖି ଦେଖି କି ଆନନ୍ଦ ଲଭୁଅଛୁ
ହେ ବାମଣ୍ଡା-ପତି !
ଏହି ପୁଣ୍ୟ ପୀଠ ପାଶେ ତୋଳିଅଛ
ବସନ୍ତ ନିବାସ
ତହିଁପରେ ଆଶୀର୍ବାଦ ବରଷନ୍ତୁ
ପ୍ରଭୁ ଶ୍ରୀନିବାସ ।
ପତ୍ରଶେଷେ ଏ ପ୍ରାର୍ଥନା ଜଣାଉଛି
ଶ୍ରୀଙ୍କ-ସନ୍ନିଧାନେ
ଏ ନିଭୃତ ତୀର୍ଥ-ଶାନ୍ତି ଝଳୁଥିବ
ପବନ ବିଧାନେ ।

ଶ୍ରୀମଧୁସୂଦନ ରାଓ
୨୩ — ୫ — ୧୧

Printed by D. Garnayak,
The Hitaishini Electric Machine Press
Bamra